# ଶ୍ରେଷ୍ଠ ଗଳ୍ପ ଗୁଚ୍ଛ

ଧନେଶ୍ୱର ସାମଲ



# ପେଟୁ ଗଳ୍ପଗୁଚ୍ଛ

[ ଦ୍ୱିତୀୟ ଭାଗ ]

ଲେଖକ

ଶ୍ରୀ ଧନେଶ୍ୱର ସାମଲ

ନିରୁପମା ପ୍ରକାଶନୀ

ବାଖରାବାଦ, ନନ୍ଦସାହି, କଟକ - ୨

# ପେଟୁ ଗଳ୍ପଗୁଚ୍ଛ

ଲେଖକ :
**ଶ୍ରୀ ଧନେଶ୍ୱର ସାମଲ**

ପ୍ରକାଶକ :
**ନିରୁପମା ପ୍ରକାଶନୀ**
ବାଖରାବାଦ, ନନ୍ଦସାହି
କଟକ-୨

ପ୍ରଚ୍ଛଦପଟ :
**ବିଜୟ ପ୍ରଧାନ**

ଡି.ଟି.ପି. :
**ୟୁନିଟେକ**
ଚୌଧୁରିବଜାର, କଟକ-୧

ମୁଦ୍ରଣ : ରୟାଲ ହାପ୍‌ଟୋନ୍ କୋ, କଟକ - ୨

କଟକ

ପ୍ରଥମ ପ୍ରକାଶ : ୧୯୯୭

ମୂଲ୍ୟ : ଆଠ ଟଙ୍କା

# ସୂଚୀ





# ଆମୁଖ

ମୋର 'ପେଟୁ ଗଳ୍ପଗୁଚ୍ଛ' ସଂକଳନଟି କେତେକ ପ୍ରକାଶିତ ଓ ଅପ୍ରକାଶିତ ଶିଶୁଗଳ୍ପ ସମ୍ଭାରର ସମାହାର । ଏହାର ସଂକଳନଟି କରିଛନ୍ତି ମୋର ପୁତ୍ର ମୃତ୍ୟୁଂଜୟ, ଜନ୍ମେଜୟ, ସଂଜୟ ଓ ତନ୍ମୟ ।

ଏହାର ପୁସ୍ତକାକାରେ ମୁଦ୍ରଣ ଓ ପ୍ରକାଶନଟି ଯେଉଁ ପ୍ରିୟ ସଂସ୍ଥାଟି ସଚ୍ଚିତ୍ର କରି ଏହା କରାଇଛନ୍ତି ତାଙ୍କୁ ମୋର ହୃଦୟବତ୍ତାରୁ ଧନ୍ୟବାଦ ।

ପୁସ୍ତକଟି ବେଶ୍ ହୃଦୟଗ୍ରାହୀ, ମଜାଦାର ଓ ଶିକ୍ଷଣୀୟ ହୋଇଅଛି । ପାଠକେ ଓ ଆଲୋଚକ ତଥା ମୋର ସୁହୃଦ୍‌ବୃନ୍ଦ ଏହା ପାଠକରି ଯେ ଆନନ୍ଦ ହେବେ—ଏଥିରେ ସନ୍ଦେହ ନାହିଁ । ଆଲୋଚକ ଓ ଗବେଷକଗଣ ଏଥିରୁ ଯେ କିଛି ଉପାଦାନ ପାଇବେ— ଏହା କହିବା ବାହୁଲ୍ୟ ମାତ୍ର ।

ସମସ୍ତଙ୍କର ଆଦରର ଧନ— ଏ ପୁସ୍ତକଟି ପାଠକମହଲ, ଶିକ୍ଷାୟତନ, ଶିକ୍ଷକ, ଶିକ୍ଷିକା ତଥା ଛାତ୍ର-ଛାତ୍ରୀମାନଙ୍କ ଦ୍ୱାରା ଆଦୃତ ଓ କ୍ରୀତ ହେଲେ—ମୁଁ ଖୁସି ହେବି । ଏଇଟି ସେମାନଙ୍କ ବର୍ତ୍ତମାନ, ଅତୀତ ଓ ଭବିଷ୍ୟତର ସଂଗ୍ରହଣୀୟ ସାମଗ୍ରୀରୂପେ ସଦାସର୍ବଦା ଅଦ୍ୟ-ସଦ୍ୟ-ଗଦ୍ୟ ଭଳି ସମାଦୃତ ହେବ—ଏହା ମୋର କାମନା । ଅତୀତରେ, ବର୍ତ୍ତମାନ ତଥା ଭବିଷ୍ୟତ ପାଠକେ ମତେ ଯେଭଳି ପ୍ରୋତ୍ସାହନ ଦେଇଛନ୍ତି ଓ ଆଦର ପ୍ରଦାନରେ କୁଣ୍ଠିତ ନ ହୁଅନ୍ତି— ସେଥିପାଇଁ ଏ ସଂକଳନ ସେମାନଙ୍କ ହାତରେ ଟେକିଦେଲି ।

**ଶ୍ରୀ ଧନେଶ୍ୱର ସାମଲ**



# ଅମାନିଆ ଫଳ ପାଇଲା



ଗତ କେତେଦିନ ଧରି ବୃଦ୍ଧ କୃଷକଟି ମୃତ୍ୟୁଶଯ୍ୟାରେ ପଡ଼ି ରହିଥିଲା । ଯେତେବେଳେ ସେ ଅନୁଭବ କଲା ଯେ, ଏବେ ସେ ଶେଷ ଶ୍ୱାସ ତ୍ୟାଗକରିବ, ସେତେବେଳେ ସେ ତା'ର ନିଜର ପୁତ୍ରମାନଙ୍କୁ ପାଖକୁ ଡାକିଲା ।

ତା'ର ଥିଲେ ଦୁଇଟି ପୁଅ । ବଡ଼ଟିର ନାମ ରୋହିତ ଓ ସାନଟିର ନାମ ମୋହିତ । ବଡ଼ପୁଅ ରୋହିତ ଅଶିକ୍ଷିତ, ଗର୍ବୀ ଏବଂ କଡ଼ା ମିଂଜାସର (ସ୍ୱଭାବର) ଥିଲା । ସେ ଥିଲା ମୂର୍ଖ, ମାତ୍ର ନିଜକୁ ସେ ଭାରି ହୁସିଆର ଓ ଚାଲାକ ବୋଲି ଭାବୁଥିଲା । ସେ ଥିଲା କର୍ମ-କୋଢ଼ି-କାମଚୋର । ଦିନରାତି ଖରାପ (ବଦମାସ) ବଂଧୁଙ୍କ ସହିତ ମଟରଗସ୍ତି କରୁଥିଲା । କିନ୍ତୁ ସାନପୁଅ—ମୋହିତ, ବଡ଼ ସୁଶୀଳ, ମେଳାପୀ ଏବଂ ଲେଖାପଢ଼ା ଜାଣିଥିବା ଶିକ୍ଷିତ ସରଳ ସ୍ୱଭାବର ଥିଲା । ସେ ବୟସ୍କ ଓ ବଡ଼ମାନଙ୍କୁ ଆଦର କରୁଥିଲା । ସେ ସେମାନଙ୍କର ସଦୁପଦେଶ ଓ ଆଜ୍ଞା ପାଳନ କରିବାରେ ବେଶ୍ ପଟୁ ଓ ଧୁରନ୍ଧର ଥିଲା । ସେ ଏହାକୁ ତା'ର ସମୁଚିତ କର୍ତ୍ତବ୍ୟ ବୋଲି ଭାବୁଥିଲା । ସେ ସଦାସର୍ବଦା ନିଜ କାର୍ଯ୍ୟରେ ବ୍ୟସ୍ତ ରହୁଥିଲା ।

ଦିନେ ବୁଢ଼ା ଚାଷୀଟି ନିଜର ପୁଅ ଦୁହିଁଙ୍କୁ ପାଖକୁ ଡାକି କହିଲା – ପିଲାଏ, ମୁଁ ଏବେ ଆଉ ଦି'ଚାରି ଘଣ୍ଟାର ଅତିଥି । ଏବେ ତ ଅଣଚାଷ ବଢ଼ିଲାଣି । ଏଣୁ, ମୋ କଥା ତୁମେ ଦୁହେଁ ମନୋଯୋଗ ସହକାରେ ଶୁଣ ଆଉ ମୁଁ ଯାହା କହୁଛି ସେହିପରି କରିବ । ତେବେ ଯାଇ ମୋର ଆତ୍ମା ଶାନ୍ତି ପାଇବ ଓ ତୁମମାନଙ୍କର ଦିନ ମଧ୍ୟ ସୁରୁଖୁରୁରେ କଟିଯିବ ।

ସେ ତା'ର ଶ୍ୱାସକ୍ରିୟା ସ୍ୱାଭାବିକ ଅବସ୍ଥାକୁ ଆସିଲା ପରେ କହିଲା— ''ମୁଁ ପଇସାକୁ ପଇସା ଯୋଡ଼ି ମୋର ଦୁଃସମୟ ପାଇଁ କିଛି ଧନ ସଂଗ୍ରହ କରିଥିଲି—ତାକୁ ଏକ କଳସରେ ପୂରାଇ ଏ କୁଟୀର ପଛରେ ଥିବା କିଆରୀରେ ପୋତି ଦେଇଛି । ଠିକ୍ ଜାଗାଟି ମୁଁ ଭୁଲିଯାଇଛି । ତମେ ଦୁଇ ଭାଇ ସଂଧାନ ନେଇ ତାକୁ ବାହାର କରି ନିଜ ନିଜ ଭିତରେ ସମାନ ସମାନ ଭାବେ ବାଣ୍ଟିନେବ ।

ଦ୍ୱିତୀୟ କଥା ହେଲା, ପଡ଼ୋଶୀ ଗାଁର ଶେଠ୍ ଆମ କାଳୀ ଗାଈଟିକୁ ମୁଁ ଯେତିକି ଦର କହିବି—ସେତିକିରେ ଖରିଦ୍ କରି ନେବାକୁ ଚାହୁଁଥିଲା । ମାତ୍ର, ମୁଁ ତାଙ୍କୁ ଦେଇନି । ଯଦ୍ୟପି ସେ ବହୁତ ପ୍ରଲୋଭନ ଦେଖାଇଥିଲା ଏବଂ ଦୀନ ଭାବରେ ପ୍ରାର୍ଥନା କରିଥିଲା– ତାହା ମୁଁ ଶୁଣିନି । କାରଣ, ସେ ଏ ଗାଈଟିକୁ ଭାରି ପସନ୍ଦ କରୁଥିଲା । ମୋ ମୃତ୍ୟୁପରେ ଏ ଗାଈଟିକୁ ତାକୁ ଦେଇଦେବ । ଏହା ହେଲେ ଯାଇଁ ମୋ ଆତ୍ମା ଉପରୁ ଏ ବୋଝ ଓହ୍ଲାଇଯିବ ।

ତୃତୀୟ କଥା ହେଲା, ମୁଁ ଯେତେବେଳେ ଏ ଗାଁକୁ ପ୍ରଥମ କରି ଆସିଥିଲି ସେତେବେଳେ ଥିଲା ଗ୍ରୀଷ୍ମ ଋତୁ (ଖରାଦିନ) । ମୁଁ ଶୋଷରେ ଆଉଟୁ-ପାଉଟୁ ହେଉଥିଲି । ମାତ୍ର ମତେ କେଉଁଠୁ ହେଲେ ପିଇବା ପାଣି ମୁନ୍ଦାଏ ମଧ ମିଳି ନଥିଲା । ସେହିଦିନଠାରୁ ମୁଁ ବାଟୋଇ ଓ ପଥଚାରୀମାନଙ୍କୁ ଗାଁ ମୁଣ୍ଡରେ ଜଳଛତ୍ର ଦେଇଆସୁଛି । ମୁଁ ମଲାପରେ ମଧ ତୁମେ ଦୁହେଁ ଏ କାମ ଚାଲୁ ରଖିବ । ଏତିକି କହି ବୃଦ୍ଧ କୃଷକଟି ପ୍ରାଣତ୍ୟାଗ କଲା ।

ନିଜ ପିତାଙ୍କର କ୍ରିୟାକର୍ମ ବଢ଼ିଗଲା ପରେ ଦିନେ ମୋହିତ ପ୍ରସ୍ତବ ଦେଲା– ‘‘ଭାଇ ! ଏବେ ଆମକୁ ଆମ ବାପାଙ୍କର ଶେଷ ଇଚ୍ଛା ପୂର୍ଣ୍ଣ କରିବାକୁ ପଡ଼ିବ । ଆସ, ଏବେ ଆମେ ଜମିରେ ପୋତା ହୋଇଥିବା ଧନକୁ ଖୋଜି ବାହାର କରିବା ଏବଂ ନିଜ ନିଜ ମଧରେ ବାଣ୍ଟିନେବା ।’’ ଏହା ଶୁଣି ରୋହିତ ହସି ହସି ଗଡ଼ିଗଲା । ସେ ତାଚ୍ଛଲ୍ୟ (ଉପେକ୍ଷା) ପ୍ରକାଶ କରି କହି ଉଠିଲା – ‘ମୋହିତ, ମୁଁ କ’ଣ ଏଡ଼େ ମୂର୍ଖ ହୋଇଛି ଯେ, ତୋ କଥାରେ ରାଜି ହୋଇଯିବି ! ମୁଁ ମଧ ଏମିତି ଅନେକ କାହାଣୀ ଶୁଣିଛି । ଏମିତି ଜଣେ ବୁଢ଼ାର ମୂର୍ଖ ପୁତ୍ରଯାକ ରାତିସାରା ଖେତ (କ୍ଷେତ) ଖୋଳି ଖୋଳି କେଉଁଠି ହେଲେ ଧନର ସଂଧାନ ପାଇଲେ ନାହିଁ । ପରେ ସେମାନେ ଏହା ଜାଣିଲେ ଯେ, ତାଙ୍କର ପିତା ଏହି ପତିତ ଜମିକୁ ସେମାନଙ୍କର କର୍ମକୁଣ୍ଠ ପୁତ୍ରମାନଙ୍କ ଦ୍ୱାରା ଆବାଦ କରାଇ ଉପଜାଉ କରାଇବାକୁ ଚାହୁଁଥିଲେ । ଯାହା ଫଳରେ କି ସେମାନେ ନିଜର ଜୀବନ

ନିର୍ବାହ କରି ପାରିବେ। ମୋ ବାପାଙ୍କର ଇଚ୍ଛା ମଧ୍ୟ ଏହିପରି ହୋଇଥାଇ ପାରେ ! ନା ବାବା, ନା ! ମୁଁ ତୋ କଥାରେ ରାଜି ନୁହେଁ । ଆହୁରି ମଧ୍ୟ ସେ ବ୍ୟଙ୍ଗ-ବିଦ୍ରୂପ କରି କହି ଉଠିଲା– 'ଯାଆ, ଯଦି ତୁ କିଛି ଧନ ପାଇବୁ—ମୁଁ ସେଥିରୁ କିଛି ଭାଗ ନେବି ନାହିଁ । ସବୁ ତୁ ନେଇଯିବୁ ।' ଏତିକି କହି ରୋହିତ ନିଜର କୁସଙ୍ଗୀ ବଂଧୁମାନଙ୍କ ସହ ଚାଲିଗଲା ।

ମୋହିତ କୋଦାଳ ଧରି ସେ କ୍ଷେତକୁ ହାଣିମାରି ତାଡ଼ିବାକୁ ଲାଗିଲା । ତିନି ଭାଗ ଖୋଳିସାରିବା ପରେ ଯେତେବେଳେ ସେ କୌଣସି କଳସ ଦେଖିବାକୁ ପାଇଲା ନାହିଁ, ସେତେବେଳେ ସେ ମଧ୍ୟ ତା'ର ବଡ଼ଭାଇ କଥା ମାନିନେବାକୁ କାତର ହୋଇ ପଡ଼ିଲା । ତଥାପି ସେ ସେହି ଜମି ତାଡ଼ିବାରୁ କ୍ଷାନ୍ତ ହେଲା ନାହିଁ (ଓହରିଗଲା ନାହିଁ) । କାରଣ ସେ ତାର ବାପାଙ୍କ କଥାକୁ ଶିରୋଧାର୍ଯ୍ୟ ମନେ କରି ପାଳନ କରିବାକୁ ଚାହୁଁଥିଲା । ଟିକିଏ ଦମ୍ ମାରି (ବିଶ୍ରାମ ନେଇ) ଯେମିତି ସିଏ କୋଦାଳ ମାରିଛି ସେମିତି ଏକ ଝନ୍ କରି ଶବ୍ଦ ହେଲା । ମାଟି ଆଡ଼େଇ ଦେବାରୁ କଳସଟି ଦେଖାଗଲା । ଏହା ଦେଖି, ସେ ଅତ୍ୟନ୍ତ ଖୁସି ହୋଇଗଲା । ରୋହିତ ଏ ଖବର ପାଇ ପଶ୍ଚାତ୍ତାପ କରିବାକୁ ଲାଗିଲା । ଆଉ କିଛିଦିନ ପରେ ମୋହିତ କହିଲା–'ରୋହିତ ଭାଇ, ବାପା ମଲାବେଳେ କହି ଯାଇଛନ୍ତି ଯେ, କାଳୀ ଗାଈଟିକୁ ଶେଠଙ୍କ ଘରେ ପହଁଚାଇ ଦେବାକୁ । ତମେ ଗାଈଟି ନେଇ ଯାଅ । ତା' ବଦଳରେ ଶେଠ ଯାହା କିଛି ଦେବେ— ସେ ସବୁ ତମେ ନିଜେ ଏକୁଟିଆ ରଖିନବ । ଆହୁରି ମଧ୍ୟ, ଏହାଦ୍ୱାରା ଆମ ପିତାଙ୍କର ଆଜ୍ଞା ମଧ୍ୟ ପୂର୍ଣ୍ଣ ଭାବରେ ପାଳିତ ହେବ ।'

ରୋହିତ ତ ପ୍ରଥମରୁ ଖପ୍ପା ହୋଇ ବସିଥିଲା । ଏକଥା ତାକୁ କଟା ଘା'ରେ ଚୂନ ଲାଗିଲା ଭଳି ବୋଧ ହେଲା । ସେ ରାଗିଯାଇ ଟେଢ଼ା କଥାରେ କହିଲା,–''ଯାଆ, ଯା' ତୁ ନିଜେ ଯାଇ ଗାଈ ଦେଇ ଆ । ସେ କୃପଣ ଶେଠ ଏ

ଗାଈ ପାଇଁ କିଛି ହେଲେ ଦେବ ନାହିଁ । ଦେଖ୍ କ'ଣ ହେଉଛି ! ମୁଁ କ'ଣ ତୋ ଭଳି ଏଡ଼େ ମୂର୍ଖ !'' ସେ ଚାଦର ଘୋଡ଼େଇ ହୋଇ ଶୋଇଗଲା ।

ମୋହିତ ଗାଈଟି ନେଇ ଶେଠଙ୍କ ଘରକୁ ଗଲା । କାଳୀ ଗାଈଟିକୁ ଦେଖୁ ଦେଖୁ ଶେଠ ଭାରି ଖୁସି ହୋଇଗଲେ । ଜଣେ ସାଧୁ ସେହି ଶେଠଙ୍କୁ ପରାମର୍ଶ ଦେଇଥିଲେ ଯେ କାଳୀ ଗାଈ– ଯାହା ମୁଣ୍ଡରେ କି ଧଳା ଚାନ୍ଦଟିଏ ଥିବ– ତାକୁ ପାଳନ ପୋଷଣ କରି ରଖିଲେ ତାଙ୍କର ପୁତ୍ର ରତ୍ନଟିଏ ଲାଭ ହେବ । ଶେଠଙ୍କର କେବଳ ମାତ୍ର ଗୋଟିଏ ଝିଅ ଥିଲା, ପୁଅ ନଥିଲା । କାଳୀଗାଈ ତ ଅନେକ ମିଳୁଥିଲେ, କିନ୍ତୁ ମୁଣ୍ଡରେ ଧଳାଚାନ୍ଦବାଲୀ ଗାଈଟି କେବଳ ସେହି ବୃଦ୍ଧ କୃଷକ (ବୁଢ଼ା ଚାଷୀଟି) ପାଖରେ ହିଁ ଥିଲା । ଏଥିପାଇଁ ଶେଠ ସେ ଗାଈଟି ପାଇଁ ଏତେ ଲାଳାୟିତ ଥିଲେ ।

ଗାଈଟି ପାଇ ଶେଠ ଏତେ ଖୁସି ଓ ଆନନ୍ଦବିଭୋର ହୋଇ ଉଠିଲେ ଯେ, ମୋହିତକୁ ନିଜର ଜ୍ୱାଇଁ କରିବାକୁ ମନସ୍ଥ କରିନେଲେ । ଶେଠ ତାଙ୍କ ନିଜ କନ୍ୟାଟି ସହିତ ତାକୁ ପ୍ରଚୁର ଧନ ମଧ୍ୟ ଦେଲେ । ରୋହିତ ଏ ଖବର ଶୁଣି ତଟସ୍ଥ ହୋଇଗଲା । ସୁନ୍ଦର ପତ୍ନୀ ପାଇବାର ସୁନେଲି ସ୍ୱପ୍ନର ଅବସର ସେ ଜାଣିଶୁଣି ହରାଇ ବସିଥିଲା । ସେ କେବଳ ମନସ୍ତାପ ଓ ଅବଶୋଷରେ ଘାରି ହେଲା । ଏହା ବ୍ୟତୀତ ଆଉ ବା ସେ କ'ଣ କରିଥା'ନ୍ତା !

ମୋହିତ ନିଜର ସୁନ୍ଦରୀ-ସୁଶୀଳା ପତ୍ନୀ ସହିତ ବେଶ୍ ସୁଖରେ ରହିବାକୁ ଲାଗିଲା । ଏଣେ, ରୋହିତ ଈର୍ଷାରେ ଜଳିପୋଡ଼ି ନିଆଁବାଣ ହେଉଥିଲା ।

କିଛି ଦିନ ଏମିତି କଟିଗଲା । ଦିନେ ମୋହିତ ତା' ନିଜ ଭାଇ ରୋହିତ ନିକଟକୁ ଯାଇ କହିଲା– 'ଭାଇ, ତୁମ ପାଇଁ ପ୍ରାୟଶ୍ଚିତ୍ତ କରିବାର ଆଉ ଏକ ଅବସର ଅଛି । ନିଜ ବୃଦ୍ଧ ପିତାଙ୍କର ଆଦେଶ-ଆଜ୍ଞା ପାଳନ ନକରିବାର ପରିଣାମ ତ ତମେ ନିଜେ ଦେଖିଲ । ବାପା ଆମକୁ ପଥଚାରୀ-ବାଟୋଇମାନଙ୍କୁ ଜଳଛତ୍ର

ଦେବା ଲାଗି କହି ଯାଇଥିଲେ । ଖରାଦିନ ଏବେ ଆସିଗଲା । ତମେ ପାଣି ପେଇବା ଆରମ୍ଭ କରିଦିଅ । ହୁଏତ ଏହାଦ୍ୱାରା ତୁମର କିଛି ମଙ୍ଗଳ (ଭଲ) ହୋଇପାରେ ।'

ମୋହିତର କଥା ଶୁଣୁଶୁଣୁ ରୋହିତ ରାଗରେ ଜଳି ଉଠିଲା । ସେ ଭାବିଲା– ମୁଁ କ'ଣ ତା ହାତର ମାଟିକଣ୍ଢେଇ କି ? ମତେ ସେ କ'ଣ ଭାବୁଛି ? ନିଜେ ତ ତା' ସ୍ତ୍ରୀ ସହିତ ବେଶ୍ ଆରାମ୍ ଓ ମୌଜରେ ଅଛି । ଆଉ, ଏ ଖରାତରାରେ ପଥିକମାନଙ୍କୁ ପାଣି ପିଆଇବାକୁ ମତେ ବତାଇ ଦେଉଛି । ସେ ସଫା ସଫା ମନା କରିଦେଲା । କହିଲା– 'ଯେତେବେଳେ ଲାଭ– ସେ କଥାକୁ ତୁ ଆଗ । ଏବେ ମତେ ତୁଚ୍ଛାଟାରେ ବେଠି ଖଟାଇବାକୁ ଚାହୁଁଛୁ ? ଯାଅ, ଯାଅ, ମୋର ଏଥିପାଇଁ ସମୟ ନାହିଁ ।'

ମୋହିତ ନିଜ ବାପାଙ୍କର ସମସ୍ତ ଇଚ୍ଛା ପୂର୍ଣ୍ଣ କରିବାକୁ ଚାହୁଁଥିଲା । ଏଣୁ, ସେ ନିଜେ ପଥଚାରୀ ବାଟୋଇମାନଙ୍କୁ ପାଣି ପେଇବା ଆରମ୍ଭ କରିଦେଲା । ଦିନେ ଟାଇଁଟାଇଁଆ ଖରାବେଳେ (ଦିନ ଦ୍ୱିପ୍ରହରରେ) ଜଣେ ଆହତ, କ୍ଲାନ୍ତ-ଶ୍ରାନ୍ତ-ଦୁର୍ବଳ ପଥିକ କେଉଁଠୁ ଆସି ସେଠି ପହୁଁଚିଲେ ଆଉ ଇଙ୍ଗିତ ଦ୍ୱାରା ପାଣି ପିଇବାକୁ ମାଗିଲେ ଏବଂ ଧଡ଼୍‌କିନା ପଡ଼ିଯାଇ ବେହୋସ ହୋଇଗଲେ । ମୋହିତ ତାଙ୍କୁ ଛାଇ ତଳକୁ (ନିଜ ଘରକୁ) ନେଇଗଲା ଆଉ ତାଙ୍କର ଚେତା ଫେରିବା ପରେ ତାଙ୍କ କ୍ଷତ ସ୍ଥାନରେ ଔଷଧ-ପଟି ବାନ୍ଧିଦେଲା । ପାଣି ପେଇଲା ଓ ଭୋଜନ ମଧ କରାଇଲା । ସେ ସୁସ୍ଥ ହେବାଯାଏ ତାଙ୍କର ସେବା-ଶୁଶ୍ରୂଷା କଲା ।

ସୁସ୍ଥ ହେବାପରେ ସେ ଅଚିହ୍ନା ବାଟୋଇ ଜଣକ ଚାଲିଗଲେ । କିନ୍ତୁ ତା'ପରଦିନ ସେ ପୁଣି ଲେଉଟି ଆସିଲେ । ଏଥର ସେ ପ୍ରଥମ ଥର ଭଳି ଖଣ୍ଡିଆ-ଖାବରା ଓ ଅସହାୟ ଅସମର୍ଥ ବ୍ୟକ୍ତି ନଥିଲେ । ରାଜକୀୟ ପୋଷାକ ପିନ୍ଧି ଘୋଡ଼ା ଉପରେ ଚଢ଼ିଥିବା ଏକ ବୀର ପୁରୁଷ ଥିଲେ । ତାଙ୍କ ସାଥିରେ ତାଙ୍କର ଅଙ୍ଗରକ୍ଷକ ମଧ ଥିଲେ । ସେ ସମ୍ଭବତଃ ଜଣେ ରାଜା ।

ଦିନ ଦୁଷ୍ଟ ଶତ୍ରୁମାନେ ତାଙ୍କ ସହ ଧୋକାବାଜି କରି, ଧରି ନେଇ ବନ୍ଦିଶାଳାରେ ପୂରାଇଥିଲେ । ମାତ୍ର, ରାଜା କୌଣସି ପ୍ରକାରେ ବନ୍ଦିଶାଳାରୁ ମୁକୁଳି ଆସି, ପଳାଇବାକୁ ସଫଳ ହୋଇ ପାରିଥିଲେ । ପୁନଶ୍ଚ, ସେ ରାସ୍ତା ଭୁଲି ଇଆଡ଼େ ସିଆଡ଼େ ବୁଲୁବୁଲୁ ତା' ପାଖରେ ଆସି ପହଂଚିଥିଲେ ।

ସେ ରାଜାଙ୍କର ଆଉ କେହି ଉତ୍ତରାଧିକାରୀ ନଥିଲେ । ମୋହିତର ସେବା-ଶୁଶ୍ରୂଷାରେ ସେ ଖୁବ୍ ପ୍ରଭାବିତ ହୋଇଯାଇଥିଲେ । ଏଥିପାଇଁ, ସେ ମୋହିତକୁ ନିଜର ଉତ୍ତରାଧିକାରୀ କରିନେଲେ ।

ଏହିଭଳି ମୋହିତ ନିଜର ଭଲକାମ ସକାଶେ ରାଜକୁମାର ହୋଇ ରାଜମହଲରେ ରହିବାକୁ ଲାଗିଲା । ଆଉ ରୋହିତ ଅଭାବଗ୍ରସ୍ତ ହୋଇ ଗରିବ ଭାବେ ଜୀବନ ବିତାଇବାକୁ ଲାଗିଲା । ବଡ଼ ବଡ଼ ବିଜ୍ଞ-ଅଭିଜ୍ଞ ବ୍ୟକ୍ତିମାନଙ୍କର କଥା ନ ମାନିଲେ ଏହିପରି ଫଳ ମିଳିଥାଏ ।

□□

ତମରି ଭଳି ପିଲାଟିଏ ଶାମୁ । ଶାମୁର କେବଳ ଗୋଟିଏ ବଦ ଅଭ୍ୟାସ ଥିଲା । ସେ ଥିଲା ଏକ ପେଟୁ ଓ ଭାରି ଟକଳା । ସେ ମସ ‌ାଦିଆ ଚାର୍ଟ ଓ ମିଠା ଖାଇବାରେ ତା'ର ସମସ୍ତ ହାତଖର୍ଚ୍ଚ ସାରି ଦେଉଥିଲା । ଯାହାକିଛି ଫଳ ମୂଳ, ମିଠେଇ ବା ପିଠା ଘରକୁ ଅଣାଯାଉଥିଲା, ତାହା ସେ ସବୁ ସଙ୍ଗେ ସଙ୍ଗେ ଖାଇ ଶେଷ କରି ଦେଉଥିଲା । ଏମିତିକି ସେ ତା'ର ସାନଭଉଣୀ ଠାରୁ ମଧ କିଛି ଖାଇବା ଜିନିଷ (ଖାଦ୍ୟ-ପଦାର୍ଥ) ବା ସ୍ୱାଦିଷ୍ଟ (ସୁଆଦିଆ) ଭୋଜନ (ଚିଜ) ଛଡ଼ାଇ ନେଇ ଖାଇ ଦେଉଥିଲା ।

ଏଥର ଶୁଣ ପିଲେ ! ଦିନେ ତା'ର ବାପା ସେଓ, ଆମ୍ବ, କଦଳୀ ଆଦି ଗୋଟିଏ ଝୁଡ଼ିରେ ଝୁଡ଼ିଏ ଘରକୁ ଆଣିଲେ । ସରଜୁ ବୋଲି ତାଙ୍କ ଘରେ ଜଣେ ବୟସ୍କ ଓ ବିଶ୍ୱାସୀ ଚାକର ଥିଲା । ସେ ସେହି ଫଳମୂଳଭରା ଝୁଡ଼ିଟିକୁ ତାକୁ ଦେଇ କହିଲେ, ''ଏସବୁକୁ ସାବଧାନତା ସହକାରେ ରଖିବ । କିନ୍ତୁ ସାବଧାନ, ଶାମୁ ଯେମିତି ୟାକୁ ନଦେଖେ, ଏହାର ଟେର୍ ନ ପାଏ । ଯଦି ସେ ୟାକୁ ସବୁ ଦେଖିଦିଏ, ସେ ଖଣ୍ଡେ ହେଲେ ବି ଖଣ୍ଡିଆ ଫଳମୂଳ ଆଉ ଅନ୍ୟ କାହା ପାଇଁ ରଖି ଦବନି । ସବୁ ଖାଇ ନିଃଶେଷ କରିଦେବ ।''

ସେତିକିବେଳେ ଶାମୁ ସେହି ଘରର ଆର ବଖରାରେ ରହି ତା'ବାପା ଯାହାସବୁ କହୁଥିଲେ, କାନ ପାରି ଶୁଣୁଥିଲା । ସଙ୍ଗେ ସଙ୍ଗେ ସେ ସରଜୁ ପଛେ ପଛେ ଛପି ଛପି ଚାଲିଲା ଆଉ ସେ ଯେଉଁଠି ସେ ଝୁଡ଼ିଟି ରଖିଲା, ତାହା ଦେଖିନେଲା । କହିଲ ଦେଖି ପିଲେ ! ଶାମୁ ଏଥର କ'ଣ କରିଥିବ ?

ଯେତେବେଳେ ସରଜୁ ସେ ସ୍ଥାନ ଛାଡ଼ି ବାହାରିଗଲା, ସେତେବେଳେ ତାକୁ ଏକ ସୁବର୍ଣ୍ଣ ସୁଯୋଗ ମିଳିଗଲା । ସେ ସମସ୍ତ ଫଳମୂଳ ଖାଇ ଶେଷ କରିଦେଲା । ସଂଧ୍ୟା ସୁଦ୍ଧା ସେ ସେହି ଝୁଡ଼ିର ଫଳମୂଳ ଖାଇ ତାକୁ ଖାଲି କରିଦେଲା ।

ପରେ, ଯେତେବେଳେ ଶାମ୍ବୁର ବାପା ସେ ଫଳଝୁଡ଼ିଟି ଆଣିବାକୁ ସରଜୁକୁ କହିଲେ, ଯେତେବେଳେ ସେ ଖାଲି ଝୁଡ଼ିଟି ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଶାମ୍ବୁର ବାପା ସରଜୁଠାରୁ ଏକଥା ଶୁଣି କହି ଉଠିଲେ, ''ନିଶ୍ଚୟ ଏହା ଶାମ୍ବୁର କାମ ।''

ତା'ପରେ ସେ ଶାମ୍ବୁକୁ ଉଚିତ ଶିକ୍ଷା ଦେଇ, ତା'ର ଏହି ବଦ-ଅଭ୍ୟାସ ଛଡ଼ାଇବାକୁ ମନସ୍ଥ କଲେ । ସେ ଏକ ଉପାୟ ଓ କୌଶଳ ଚିନ୍ତାକଲେ । ସେ ସରଜୁକୁ ଡାକି ତାଙ୍କ କୌଶଳର ଉପାୟଟି ବତାଇଦେଲେ ।

ତା'ପରଦିନ ଶାମ୍ବୁର ବାପା ସରଜୁକୁ ଡାକି କହିଲେ, ''କିଛି ମିଠା ଆଣ । ସନ୍ଧ୍ୟାବେଳକୁ କେତେକ ଅତିଥି ଓ ବଂଧୁଙ୍କର ଏଠିକି ଆସିବାର ଅଛି ।''

ଏହା ଶୁଣି ଶାମ୍ବୁ ସଜାଗ ହୋଇଗଲା ଓ ସେ ମିଠାତକ କିପରି ଖାଇବ— ଚିନ୍ତା କରି ତା'ପାଟିରୁ ଲାଳ ଗଡ଼ାଇଲା । କିଛି ସମୟ ପରେ ସେ ଦେଖିଲା ଯେ, ସରଜୁ ହାତରେ ଗୋଟିଏ ବାକ୍ସ ନେଇ ଭଣ୍ଡାର ଘରକୁ ଯାଉଛି ।

ତା'ପରେ ସରଜୁ ଶାମ୍ବୁର ବାପାଙ୍କୁ କହିଲା, ''ମୁଁ ଯତ୍ନ ସହକାରେ ମିଠା-ପେଟିଟି ଏକ ନିରାପଦ ସ୍ଥାନରେ ରଖି ଦେଇଛି । ଯଥାଶୀଘ୍ର ଆଗନ୍ତୁକମାନଙ୍କ ପାଇଁ ଏହା ବଢ଼ାଯିବ ।''

ସରଜୁ ବଡ଼ପାଟିରେ ଏହା କହିଲା, ଯେପରିକି ଶାମ୍ବୁ ଏହା ଭଲ ଭାବରେ ଶୁଣି ପାରିବ । ଏଥର ଏକଥା ଶୁଣି ଶାମ୍ବୁ କିପରି ସେ ମିଠାତକ ଗଳାର୍ଦ୍ଧକରଣ କରିବ— ସେଥିପାଇଁ ସେ ତା'ର ଲୋଭ ଓ ଲାଳସାକୁ ଚାପି ରଖି ପାରିଲା ନାହିଁ । ସେ ସଙ୍ଗେ ସଙ୍ଗେ ସେହି ପୁରୁଣା ଭଣ୍ଡାର ଘରକୁ ଚାଲିଲା । ସେ ଘରେ ଖୁବ୍ ଅସ୍ପଷ୍ଟ ଆଲୋକ ଥିଲା । ବିଜୁଳିବତିର ବଲ୍ବଟି ଫିଉଜ୍ ହୋଇଯାଇଥିଲା । ତଥାପି, ଶାମ୍ବୁର ତୀକ୍ଷ୍ଣ ଆଖିରୁ ମିଠା-ପେଟିଟି ବାଦ୍ ଗଲା ନାହିଁ । ତାହା ଏକ କାଠବାକ୍ସ ଉପରେ ଥୁଆ ଯାଇଥିଲା ।

ଶାମୁ ଏଥର ଭାରି ଖୁସି । ସାଙ୍ଗେ ସାଙ୍ଗେ ସେ ସେହି ବାକ୍ସ (ପେଟିଟି) ଖୋଲିଲା । ଯେମିତି ସେ ଏତିକି କରିଛି– ସଂଗେ ସଂଗେ ସେ ବାକ୍ସ ଭିତରୁ ଏକ ଫାପୁଲା (ମୋଟା) ବେଙ୍ଗ ଫକ୍‌କିନା ଡିଆଁ ମାରି ବାହାରି ପଡ଼ିଲା । ହଠାତ୍ ସେ ଭୟଭୀତ ହୋଇ ଉଠିଲା ଓ ତା' ପାଟିରୁ ଜୋର୍‌ରେ ଏକ ଚିତ୍କାର ଶବ୍ଦ ଶୁଣାଗଲା ।

ସେ ଭୟଭୀତ ଓ ଆତୁର କାତର ହୋଇ ବୁଲି ପଡ଼ିଲା । ମାତ୍ର ସେ ସେତେବେଳକୁ ତାର ନିଜ ଉପରୁ ସମସ୍ତ ନିୟନ୍ତ୍ରଣ ହରାଇ ସାରିଥିଲା । ସେ ତା' ମସ୍ତିଷ୍କ ଓ ଶରୀରର ଭାରସାମ୍ୟ ହରାଇ ସାରିଥିଲା । ସେ ସେହି ଅନ୍ଧାରୁଆ ଘରେ କ'ଣ ଗୋଟାଏ ଝୁଣ୍ଟି ପଡ଼ିଗଲା । ସେ ଏକ ପାଣିକୁଣ୍ଡ ଭିତରେ ପଡ଼ିଗଲା ଆଉ ପୂରାପୂରି ତିନ୍ତି ଜୁଡ୍ଡୁବୁଡ୍ଡୁ ହୋଇଗଲା ।

ଶାମୁର ବାପା-ବୋଉ ଓ ତା'ର ସାନ ଭଉଣୀ—ଯେଉଁମାନେ କି ସେ ଘର ବାହାରେ ଥିଲେ—ସେଠି ପହଁଚି ଶାମୁକୁ ସେ ପାଣିକୁଣ୍ଡ ଭିତରୁ ଓ ସେ ଘରୁ ବାହାରି ଆସିବା ପାଇଁ ସାହାଯ୍ୟ କଲେ । ଆଲୁଅରେ ଯେତେବେଳେ ସେମାନେ ତାକୁ ଦେଖିଲେ, ନ ହସି ରହି ପାରିଲେ ନାହିଁ । କାରଣ, ସେ କୁଣ୍ଡରେ ନାଲିରଙ୍ଗ ପାଣି ରଖାଯାଇଥିଲା ।

ଶାମୁକୁ ଏଥର ଭାରି ଲାଜ ମାଡ଼ିଲା ଓ ସେ ଅପଦସ୍ଥ ଏବଂ ଅପରାଧୀ ବୋଲି ନିଜକୁ ମନେକଲା । ଏହାପରେ ସେ ତା'ର ଏହି ଖାଦ୍ୟ-ଲୋଭପଣିଆର ଲାଳସା ତ୍ୟାଗ କଲା (ଛାଡ଼ିଦେଲା) । ଶୁଣିଲ ତ ପିଲେ ! ଶାମୁଭଳି ହେଲେ କିପରି ଅପମାନ ଓ ଲାଜ ଭୋଗିବାକୁ ପଡ଼େ ?

❑❑

ଗାନ୍ଧାର ଦେଶର ଯୁବରାଜ ଚିତ୍ରରଥ ଥିଲେ ଜଣେ ଅଦ୍ଭୁତ ବ୍ୟକ୍ତି । ଯାହା ସେ କରିବାକୁ ସଂକଳ୍ପ ନେଉଥିଲେ ତାହା ସେ ନକରି ଛାଡୁ ନଥିଲେ । ରାଜା ଦେବ-ଗନ୍ଧର୍ବ ଏଥିପାଇଁ ସମୟେ ସମୟେ ଉଦ୍‌ବିଗ୍ନ ହୋଇ ଉଠୁଥିଲେ । ପୁଅର ଜିଦ୍ ତାଙ୍କୁ ଚିନ୍ତିତ ଓ ବିବ୍ରତ କରି ପକାଉଥିଲା । ହେଲେ ଚିତ୍ରରଥ ଥିଲେ ତାଙ୍କର ଏକମାତ୍ର ପୁତ୍ର । ତାର ଜିଦ୍ ଆଗରେ ସେ ନଇଁ ନପଡୁଥିଲେ ଆଉ ବା କଣ କରନ୍ତେ ? ଥରେ ଚିତ୍ରରଥ ଏମିତି ଏକ ଜିଦ୍ ଧରିଲେ ଯେ ତିନିମାସ ଯାଏ ରାଜମହଲରୁ କୁଆଡ଼େ ହେଲେ ବାହାରିଲେ ନାହିଁ । ଯିଏ ଶୁଣିଲା ସିଏ ଆଶ୍ଚର୍ଯ୍ୟ ହୋଇଗଲା । ସମସ୍ତେ ଭାବିଲେ—"ଏ ବୋଧେ ରାଜକୁମାରଙ୍କର ଗୋଟିଏ କିଛି ରୋଗ ।" ରାଜା ଏବଂ ରାଣୀ ତାଙ୍କୁ ପଚାରିଲେ, ମାତ୍ର ସେ ଉତ୍ତର ଦେଲେ "କିଛି ଦିନ ମୁଁ ଏକୁଟିଆ ରହିବାକୁ ଚାହେଁ ।"

କିନ୍ତୁ ଦିନେ ରାଜକୁମାର ନିଜର ମିତ୍ର ପୁଷ୍ପରାଜଙ୍କୁ କହିଦେଲେ— 'ମୁଁ ଗୋଟିଏ ପରୀକୁ ବିବାହ କରିବି, ସେ ହେଉଛି ସପନପରୀ ।"

"କେଉଁ ସପନପରୀ ? ସେ କେଉଁଠି ରହେ, ତମେ କ'ଣ ତାକୁ କେବେ ଦେଖିଛ ?"

ପୁଷ୍ପରାଜର ପ୍ରଶ୍ନ ପାଇଁ ରାଜକୁମାରଙ୍କ ପାଖରେ କିଛିହେଲେ ଉତ୍ତର ନଥିଲା । ତେଣୁ ସେ ପୁଷ୍ପରାଜଙ୍କୁ ନିଜର ସପନ କଥା ଶୁଣାଇଲେ । ସ୍ୱପ୍ନରେ ସେ ସାତରଙ୍ଗ ବିଶିଷ୍ଟ ଏକ ଅଦ୍ଭୁତ ମୃଗ ଦେଖିଥିଲେ । ଡେଇଁ-ଡେଇଁକା ସେ ଗୋଟିଏ ଫୁଲବଣ ଭିତରକୁ ପଶିଗଲା । ସେ ବଣରେ ସାତରଙ୍ଗର ଫୁଲ ଫୁଟିଥିଲା । କିଛି ସମୟପରେ ରାଜକୁମାର ସେଠାରେ ସାତରଙ୍ଗର ମୋତିଯୁକ୍ତ ମୁକୁଟ ପିନ୍ଧିଥିବା ଗୋଟିଏ ପରୀ ଛିଡ଼ାହୋଇଥିବାର ଦେଖିଲେ । ନାଁ ପଚାରିବାରୁ ସେ ହସି ହସି କହିଲା— "ମୁଁ ହେଉଛି ସପନପରୀ ।" ଏହା କହିସାରି ସେ ଉଭାନ୍ ହୋଇଗଲା । ଏତିକିରେ ରାଜକୁମାରଙ୍କର ନିଦ ଭାଙ୍ଗିଗଲା ଓ ସ୍ୱପ୍ନ ଦେଖିବା

ବନ୍ଦ ହୋଇଗଲା । ସେହିଦିନରୁ ସେ ସପନପରୀକୁ ବିବାହ କରିବାକୁ ଜିଦ୍ ଧରିଥିଲେ ।

ରାଜା ଏହାସବୁ ଶୁଣିଲେ ଓ ଚିନ୍ତିତ ହୋଇପଡ଼ିଲେ । ଭାବିବାକୁ ଲାଗିଲେ– ‘‘ଏହା ବା କିଭଳି ପୂରଣ ହେବ ? ପରୀ କ’ଣ ପୃଥିବୀର ଏଇ ମର ମଣିଷକୁ ବିବାହ କରେ ? ଆଗରୁ ତ ଏହା କେବେ ହୋଇନାହିଁ ।’’ ସେ ଏହା ଚିନ୍ତା କରୁଥିବାବେଳେ ଜଣେ ସେବକ ଆସି କହିଲା, ‘‘ରାଜକୁମାର ଘୋଡ଼ା ଚଢ଼ି ଏବେ କୁଆଡ଼େ ବାହାରିଗଲେ ।’’

ଚିତ୍ରରଥ ବୁଲିବାକୁ ତ ବାହାରି ପଡ଼ିଥିଲେ କିନ୍ତୁ ଅଳ୍ପକିଛି ଆଗକୁ ଯାଇଛନ୍ତି କି ନାହିଁ ଘୋଡ଼ାଟି ଆଉ ତାଙ୍କ ଅକ୍ତିଆରରେ ରହିଲା ନାହିଁ । ସେ କୌଣସି ଏକ ଅଜଣା-ଅଚିହ୍ନା ରାସ୍ତାରେ ଦୌଡ଼ିବାକୁ ଲାଗିଲା । ହଠାତ୍ ଚିତ୍ରରଥ ସମ୍ମୁଖରେ ସାତରଙ୍ଗ ବିଶିଷ୍ଟ ଏକ ହରିଣକୁ ଦେଖିଲେ । ଅନେକାଂଶରେ ସେହିଭଳି, ଯେପରିକି ସେ ସ୍ୱପ୍ନରେ ଦେଖିଥିଲେ । ଚିତ୍ରରଥ ତାକୁ ଚାହୁଁଚାହୁଁ ତାହା ସେହି ଫୁଲବଣରେ ହିଁ କୁଆଡ଼େ ଲୁଚିଗଲା । ଆଉ ଏହି ଫୁଲବନରେ ଦେଖାଗଲା ଯେ, ସପନପରୀ ସେଠି ଠିଆ ହୋଇଛି ମୋତି-ମାଣିକର ଚକମକିଆ ପୋଷାକ ପିନ୍ଧି ।

ରାଜକୁମାର ଚିତ୍ରରଥ ଚିତ୍କାର କରି ଉଠିଲେ ‘‘ଟିକେ ରୁହ ସପନପରୀ, ଟିକେ ରୁହ ।’’

ପରୀଟି ସତକୁସତ ଅଟକି ରହିଲା ।

‘‘ତମେ ମୋ ନାଁ ଜାଣିଲ କିପରି’’, ପରୀଟି କହି ଉଠିଲା ।

‘‘ସ୍ୱପ୍ନରେ ତୁମେ ମୋତେ ବତାଇ ଦେଇଥିଲ ପରା’’– ଚିତ୍ରରଥ ମନେ ପକାଇଦେଲା ।

''ଭଲ ହେଲା ତମେ ମୋ ନାଁ ଧର ଡାକିଦେଲ ନଚେତ୍ ମୁଁ ଉଭାନ୍ ହୋଇ ଯାଇଥାନ୍ତି ସପନ ଭଳି ।''– ଏହା କହି ସପନପରୀ ହସି ଉଠିଲା ।

ଅନେକ ସମୟଯାଏ ସେ ଦୁହେଁ କଥାବାର୍ତ୍ତା ହେଲେ । କାହାରି ହେଲେ ସମୟର ଜ୍ଞାନ ରହିଲା ନାହିଁ । ସନ୍ଧ୍ୟାହେବାରୁ ସପନପରୀ ଯିବାକୁ ବାହାରିଲା । ଚିତ୍ରରଥ ତାକୁ ଅନୁରୋଧ କଲେ – ''ନା, ତମେ ଯାଅନା ସପନପରୀ । ମୁଁ ତୁମକୁ ବିବାହ କରିବାକୁ ଚାହେଁ ।''

''ଆଚ୍ଛା, ଏହା ବା କିପରି ସମ୍ଭବ ହେବ ? ଆମେ ପରୀମାନେ ନିଜ ଇଚ୍ଛାରେ କିଛି କରି ପାରିବୁ ନାହିଁ ।''– କହୁ କହୁ ପରୀଟିର ଆଖିରୁ ଅଶ୍ରୁର ଧାର ଛୁଟିଲା, କିନ୍ତୁ ଯେମିତି ତାର ଅଶ୍ରୁ ବିନ୍ଦୁଗୁଡ଼ିକ ଭୂଇଁ ଉପରେ ପଡ଼ିଲା, ସେମିତି ସେଠି ପରୀରାଣୀ ଆସି ହାଜର । ପରୀରାଣୀ କହିଲା– ''କାନ୍ଦନା ସପନପରୀ, ତମେ ଚାହଁ ତ ଚିତ୍ରରଥକୁ ବିବାହ କରିପାର । ପାଞ୍ଚବର୍ଷ ଯାଏ ପୃଥିବୀରେ ରୁହ । ତା'ପରେ, ତୁମକୁ ପରୀଲୋକକୁ ଫେରିବାକୁ ପଡ଼ିବ ।''

''ହଁ, ଏଥିରେ ମୁଁ ରାଜି ।''– ସପନପରୀ ଉତ୍ତରଦେଲା ।

ଚିତ୍ରରଥ ମଧ୍ୟ ବେଶ୍ ଖୁସିଥିଲେ । ସେ ସପନପରୀକୁ ସାଥିରେ ନେଇ ରାଜବାଟୀକୁ ଫେରିବାରୁ ତାଙ୍କର ପିତାମାତା (ରାଜା ଓ ରାଣୀ)ଙ୍କ ଆନନ୍ଦର ସୀମା ରହିଲା ନାହିଁ ।

ଛଅଦିନ ପରେ ରାଜକୁମାର ଚିତ୍ରରଥଙ୍କର ସପନପରୀ ସହିତ ବିବାହ ହେଲା ରାଜ୍ୟସାରା ଆନନ୍ଦ-ଉଲ୍ଲାସ ଖେଳିଗଲା । ସମସ୍ତେ ଖୁସି ଓ ଆନନ୍ଦରେ ନାଚିଉଠିଲେ ।

ଚିତ୍ରରଥ ସପନପରୀକୁ ସଦାସର୍ବଦା ଖୁସି ରଖିବା ପାଇଁ ଚେଷ୍ଟା କରୁଥିଲେ । ତଥାପି ସମୟେ ସମୟେ ସପନପରୀ ମୁହଁରେ ଉଦାସ ଭାବ ଫୁଟିଉଠେ । ରାଜକୁମାର ଶିକାରକୁ ଗଲେ, ସେ ତାଙ୍କ ପଛରେ ବସି ଲୁହ ଗଡ଼ାଏ ।

ଦିନେ ସେ ପରୀମାନଙ୍କର ରାଣୀଙ୍କୁ ଡାକିଲା ଆଉ କହିଲା, ''ପରୀରାଣୀ, ମୁଁ ଅଧୀରା ହୋଇପଡ଼ିଲିଣି । ଏଥର କ'ଣ କରିବି ?''

''ତମେ ତ ପାଞ୍ଚବର୍ଷ ଯାଏ ପୃଥିବୀ ପୃଷ୍ଠରେ (ମର୍ତ୍ତ୍ୟଲୋକରେ) ବାସ କରିବାକୁ ସିଦ୍ଧାନ୍ତ ନେଇଥିଲ । ପାଞ୍ଚବର୍ଷ ନପୂରୁଣୁ, ତମେ ପରୀଲୋକକୁ ଫେରି ପାରିବ ନାହିଁ ।''

ସପନପରୀ ନିଜ ମନକୁ ବୁଝାଇଲା, ''ଠିକ୍ ଅଛି, ପାଞ୍ଚବର୍ଷଯାଏ ମୋତେ ଏହି ଦୁଃଖ ସହିବାକୁ ପଡ଼ିବ ।''

ମାତ୍ର ଧୀରେ ଧୀରେ ସପନପରୀର ଦୁଃଖ ଏବଂ ଉଦାସପଣିଆ କମିବାକୁ ଲାଗିଲା । ସେ ଭାବିଲା– ''ଚିତ୍ରରଥଙ୍କ ସହିତ ବିବାହ ହେଲାପରେ, ମୁଁ ଆଉ ମନଇଚ୍ଛା ଉଡ଼ିଯାଇ ପାରିବି ନାହିଁ । କିନ୍ତୁ ଏଠି ତ ମୋତେ ଏହି ପୃଥିବୀ ଉପରେ ସବୁ ପ୍ରକାର ସୁଖ ମିଳୁଛି । ପରୀଲୋକରେ ପରୀମାନଙ୍କର ଏହା ବା ସେମାନଙ୍କ ଭାଗ୍ୟରେ ଆସିବ କେଉଁଠୁ ?''

କିଛିଦିନ ପରେ ଚିତ୍ରରଥଙ୍କର ରାଜତିଲକ ଉତ୍ସବ ଅନୁଷ୍ଠିତ ହେଲା । ରାଜା ଦେବଗନ୍ଧର୍ବ ତାଙ୍କୁ ରାଜଗାଦି ସମର୍ପଣ କରି ତପସ୍ୟା କରିବାକୁ ଚାଲିଗଲେ । ସପନପରୀ ହେଲା ଏବେ ମହାରାଣୀ । ପଣ ପଣ ଦାସଦାସୀ ତାଙ୍କ ସେବାରେ ଲାଗି ରହିଲେ । ସପନପରୀର ମନ ଏବେ ରାଜମହଲରେ ଲାଗିଗଲା । ଇତ୍ୟବସରରେ ତାଙ୍କର ଗୋଟିଏ କନ୍ୟା ବା ଝିଅ ଜନ୍ମ ହେଲା । ସେ ତାକୁ ଖୁବ୍ ସ୍ନେହ କରେ । ଶ୍ରଦ୍ଧାରେ ସେ ତା' ନାଆଁ ଦେଲା ମୃଗାବତୀ ।

ମୃଗାବତୀ କ୍ରମେ କ୍ରମେ ବଢ଼ିବାରୁ ତାର ରୂପ ଯୌବନ ମଧ୍ୟ ଅଧିକାଧିକ ପ୍ରସ୍ଫୁଟିତ ହେଲା । ମାଆ ନିଜ ଝିଅ ମୃଗାବତୀର ସେବା ଓ ସ୍ନେହରେ ଏତେ ନିମଜ୍ଜି ରହିଲେ ଯେ, କେବେ ମୃଗାବତୀ ବଡ଼ ହେଲା– ତାଙ୍କୁ ଜଣା ହେଲା ନାହିଁ । ପୃଥିବୀରେ ତାଙ୍କର ଏ ପାଞ୍ଚଟିବର୍ଷ କିଭଳି ଯେ ବିତିଗଲା, ସେ ଜାଣି ପାରିଲେ ନାହିଁ ।

ଦିନେ ସେ ମୃଗାବତୀ ନିକଟରେ ବସିଥାନ୍ତି, ସେତିକିବେଳେ ତାଙ୍କୁ ଖାଲି ଧୂଆଁଳିଆ ଦେଖାଗଲା । କିଛି ସମୟପରେ ସେ ଦେଖିଲେ ଯେ ତାଙ୍କ ସମ୍ମୁଖରେ ପରୀରାଣୀ ଦଣ୍ଡାୟମାନ । ପରୀରାଣୀ କହିଲେ– ''ଚାଲ, ସପନପରୀ, ଏଥର ପରୀ ଲୋକକୁ ଚାଲ ।''

''ମାତ୍ର ମୁଁ ... ମୁଁ ତ ଏବେ ଯିବାକୁ ଚାହୁଁନାହିଁ ।'' କହୁ କହୁ ପରୀଟିର ଆଖି ଆଗରେ ଅନ୍ଧାର ଘୋଟିଗଲା । ସେ ନିଜକୁ ସମ୍ଭାଳି ନେଇ କହିଉଠିଲା– ''ପରୀରାଣୀ, କ'ଣ ଏ ପୃଥିବୀରେ ମୁଁ ସବୁଦିନ ରହିଗଲେ ହୁଅନ୍ତା ନାହିଁ ? ମୁଁ ମୋ ନିଜର ସ୍ନେହର କନ୍ୟାକୁ ଏକୁଟିଆ ଛାଡ଼ି ଯାଇପାରିବି ନାହିଁ ।''

''ନା ସପନପରୀ, ତମେ ତ ପରୀଲୋକର ନିୟମ ଦ୍ୱାରା ହିଁ ବନ୍ଧା । ପୃଥିବୀ ପୃଷ୍ଠରେ ତୁମେ କେବଳ ପାଞ୍ଚବର୍ଷ ରହିବା ପାଇଁ ଅନୁମତି ପାଇଥିଲ । ସେ ସମୟ ପୂରିଗଲାଣି ।''– କହୁ କହୁ ପରୀରାଣୀ ଉଭାନ୍ ହୋଇଗଲେ ।

ସପନପରୀକୁ ଲାଗିଲା ଯେମିତି ଅଜଣା ଶକ୍ତି ତାକୁ ଉପର ଆଡ଼କୁ ଟାଣି ନେଉଛି । ସେ ଦେଖିଲା, ମୃଗାବତୀ ତାର ଦୁଇ ହାତ ଉପରକୁ ଟେକି ମା' ମା' ବୋଲି ଡାକୁଛି । ସେ ମୃଗାବତୀର ମସ୍ତକକୁ ଚୁମ୍ବନ କଲା ଏବଂ ଭିଜା ଭିଜା ଆଖିରେ ତା ଠାରୁ ବିଦାୟ ନେଲା । କେତେବେଳେ ଯେ ସେ ଆସି ପରୀଲୋକରେ ପହଞ୍ଚିଗଲା ତାକୁ ଜଣା ନାହିଁ । ହେଲେ, ମୃଗାବତୀର ସୁନ୍ଦର ସୁନ୍ଦର ବାହୁ ଦୁଇଟି, ଉଦାସୀ ଆଖି, ଚିତ୍ରରଥଙ୍କର ପ୍ରେମ ସବୁକିଛି ତାର ମନେ ପଡ଼ିଲା । ଗୋଟିଏ ଗୋଟିଏ ଦିନ ତା'ର ବଡ଼ କଷ୍ଟରେ କଟୁଥିଲା । ସେ ଚୁପ୍‌ଚାପ୍ ଏକାନ୍ତରେ ବସି ଲୁହ ଗଡ଼ାଉଥିଲା । ଅନ୍ୟ ପରୀମାନେ ତାକୁ କହିନ୍ତି– ''ଏ କ'ଣ, ପୃଥିବୀରେ ଏମିତି କି ସୁଖ ଅଛି ଯେ ତାକୁ ତୁମେ ମନେ ପକାଇ କାନ୍ଦୁଛ ?''

ତେଣେ ଚିତ୍ରରଥ ମଧ୍ୟ କମ୍ ଦୁଃଖିତ ହୋଇ ନଥିଲେ । ମୃଗାବତୀ ଦିନସାରା ମା' ମା' ଚିତ୍କାର କରୁଥିଲା । ଏମିତିକି ରାଜା ଚିତ୍ରରଥ ଖାଇବା ପିଇବା

ମଧ ଛାଡ଼ି ଦେଇଥିଲେ । ମନ୍ତ୍ରୀ ଏବଂ ସଭାସଦ୍‌ଗଣ ଚିତ୍ରରଥଙ୍କୁ ବୁଝାଇଲେ, ଝିଅକୁ ଖୁସି ରଖିବାକୁ ଚାହାଁନ୍ତି ତ ଆପଣ ଆଉ ଗୋଟିଏ ବିବାହ କରି ନିଅନ୍ତୁ ।''

ପରିଶେଷରେ ଚିତ୍ରରଥଙ୍କୁ ତାଙ୍କରି କଥା ମାନିବାକୁ ପଡ଼ିଲା । ସେ ମେଘ ନଗରର ରାଜକୁମାରୀ ଶ୍ୟାମଳାଙ୍କୁ ବିବାହ କଲେ । ପ୍ରଥମେ ପ୍ରଥମେ ରାଣୀ ଶ୍ୟାମଳା ମୃଗାବତୀଙ୍କୁ ଲୋକଦେଖାଣିଆ ସ୍ନେହ କରୁଥିଲେ । କିନ୍ତୁ ପରେ ସେ ତାଙ୍କର ଅସଲ ରୂପ ଦେଖାଇଲେ । ଚିତ୍ରରଥ ସମ୍ମୁଖରେ ସେ ମୃଗାବତୀଙ୍କୁ ହସି ହସି କଥା କହୁଥିଲେ, କିନ୍ତୁ ପରେ ସେ ତାଙ୍କୁ ବହୁତ ଗାଳିଗୁଲଜ କରୁଥିଲେ ଓ ଥଟ୍ଟା କରି ଦୁଃଖ ଦେଉଥିଲେ ।

ଚିତ୍ରରଥ ମୃଗାବତୀଙ୍କୁ ଯେତିକି ଭଲ ପାଉଥିଲେ ରାଣୀ ସେତିକି ଚିଡ଼ି ଉଠୁଥିଲେ । ଦିନେ ରାଗରେ ସେ ଚିଡ଼ିଉଠି ସେବକମାନଙ୍କୁ କହିଲେ, ''ଯାଅ, ଏହାକୁ ବଣରେ ଛାଡ଼ିଦେଇ ଆସ । ମୁଁ ଏ ଅଭାଗିନୀର ଆଉ ମୁହଁ ଦେଖିବାକୁ ଚାହେଁ ନାହିଁ ।'' ସେବକମାନେ ରାଣୀଙ୍କର କଥାକୁ ମାନି ନେବାକୁ ବାଧ୍ୟହେଲେ ।

ରାତିରେ ରାଜା ପଚାରିଲାରୁ ରାଣୀ ବାହାନାକରି କହିଲେ, ''ମୃଗାବତୀ କାହାକୁ କିଛି ନକହି କୁଆଡ଼େ ଚାଲିଯାଇଛି ।''

ଚିତ୍ରରଥ ବିବ୍ରତ ଓ ଦୁଃଖିତ ହୋଇ ଉଠିଲେ । ସେ ସଙ୍ଗେ ସଙ୍ଗେ ଘୋଡ଼ା ଉପରେ ଚଢ଼ି ଖୋଜିବା ପାଇଁ ବାହାରିଗଲେ ।

ତେଣେ ମୃଗାବତୀ ଜଙ୍ଗଲୀ ପଶୁମାନଙ୍କର ଚିତ୍କାର ଓ ଶବ୍ଦରେ ଡରି ଯାଇ ଗୋଟିଏ ଗଛ ମୂଳେ ବସି ପଡ଼ିଲା ଓ ନିଜର ଏ ଦୁର୍ଦ୍ଦଶା କଥା ଭାବିଲା । ସେ କରୁଣ ସ୍ୱରରେ କହିଲା– ''ମା' ମା' ତୁମେ ଫେରିଆସ । ମୁଁ ଆଉ ଏବେ ଏ ଦୁଃଖ ସହିପାରିବି ନାହିଁ ।''

କିଛି ସମୟପରେ ତାକୁ ଜଣାଗଲା ଯେପରିକି କିଏ ତା' ମୁଣ୍ଡରେ ହାତ ବୁଲାଉଛି । ମୃଗାବତୀ ମୁଣ୍ଡଉଠାଇ ଦେଖିଲା ଯେ ତା ମା' ସାମ୍ନାରେ ସପନପରୀ

ଠିଆ ହୋଇଛି । ମୃଗାବତୀ କହିଲା– ''ତୁ ମୋତେ ଛାଡ଼ି ଚାଲିଗଲୁ କାହିଁକି ମା ।''

ସପନପରୀ ବା କ'ଣ ଉତ୍ତର ଦିଅନ୍ତା । କେବଳ ନୀରବରେ ସେ ମୁଣ୍ଡ ଉପରେ ହାତ ବୁଲାଇଦେଲା । ମୃଗାବତୀ ପୁଣି ପ୍ରଶ୍ନକଲା– ଏବେ ତୁ ମୋତେ ଛାଡ଼ି ଯିବୁନି ତ ?''

ସପନପରୀ ଦରଦଭରା ଗଳାରେ କହିଲା– ''ମୁଁ ନାଚାର ଝିଅ । ଆମକୁ ପରୀରାଣୀଙ୍କ ଆଦେଶ ମାନିବାକୁ ପଡ଼େ । କିନ୍ତୁ ଦେଖ ହେଇ ତୋର ପିତା ଆସୁଛନ୍ତି । ତାଙ୍କ ସହିତ ତୁ ରାଜମହଲକୁ ଚାଲିଯା ।''

ଇତ୍ୟବସରେ ଘୋଡ଼ା ଟାପୁଶବ୍ଦ ଶୁଣାଗଲା । କିଛି ସମୟ ପରେ ଝିଅକୁ ଖୋଜି ଖୋଜି ଚିତ୍ରରଥ ସେଠାରେ ପହଞ୍ଚିଲେ । ସେ ଦେଖିଲେ ଯେ ମୃଗାବତୀ ଏକାକୀ ଏବଂ ସପନପରୀ ମଧ୍ୟ ସେଠି ଅଛି । ଚିତ୍ରରଥ ଏହା ଦେଖି ନିଜର ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ସେ ନିଜକୁ ସମ୍ଭାଳି ନପାରି କହି ଉଠିଲେ– ''ସପନପରୀ, ତୁମେ ଏଠି ।'' ସପନପରୀ ଉତ୍ତର ଦେଲା–ମୁଁ ଝିଅର ଦୁଃଖ ଦେଖି ସହିପାରିଲି ନାହିଁ । ତାକୁ ସାନ୍ତ୍ୱନା ଦେବାପାଇଁ ଓ ସାହସ ଦେବାପଇଁ ଏଠାକୁ ଆସିଥିଲି ।''

ଚିତ୍ରରଥ କମ୍ପିତ ସ୍ୱରରେ କହିଲେ, ''ମୁଁ ଜାଣିନଥିଲି ଯେ ମୃଗାବତୀକୁ ଏ ଦୁଃଖ ସହିବାକୁ ପଡୁଛି । ନୂଆରାଣୀ ମୋତେ ଧୋକା ଦେଇଛି । ତୁମେ କ'ଣ ଆଉ ଏ ରାଜମହଲକୁ ଫେରି ଆସିବ ନାହିଁ ?''

''ଫେରି ଚାଲ ମା', ଫେରିଚାଲ ... ତମେ କ'ଣ ମତେ ଆନନ୍ଦ ଓ ସୁଖରେ ରଖିବାକୁ ଚାହଁନାହିଁ ?''– ମୃଗାବତୀ ପ୍ରଶ୍ନକଲା । ତାହା ଶୁଣି ସପନପରୀ ଆଖିରୁ ଝର୍‌ଝର୍ ହୋଇ ଲୁହ ଗଡ଼ିବାକୁ ଲାଗିଲା । ସେ ଉତ୍ତର ଦେଲା– ମୁଁ ନାଚାର ।''

ଯେମିତି ସପନପରୀର ଲୁହ ଭୂଇଁ ଉପରେ ପଡ଼ିଛି ସେମିତି ପରୀରାଣୀ ଆସି ଦେଖାଦେଲେ । ସେ ମୁରୁକି ହସି କହିଲେ – ''ଏବେ ତୁମେ ପୃଥିବୀରେ ସବୁଦିନ ପାଇଁ ରହିବାକୁ ଚାହଁ ? ଏଥିରେ ରାଜି ତ ?''

'ହଁ', ସପନପରୀ ଉଲ୍ଲସିତ ହୋଇ କହି ଉଠିଲା । ଚିତ୍ରରଥ ଓ ମୃଗାବତୀଙ୍କୁ ଯେପରିକି ଏକ ନୂଆ ଜୀବନ ମିଳିଗଲା ।

ରାଜା ସପନପରୀ ଏବଂ କନ୍ୟା ସହିତ ରାଜବାଟୀକୁ ଫେରିଲେ । ଫଳରେ ଗାନ୍ଧାର ଦେଶରେ ଯେଉଁ ଆନନ୍ଦ ଉଲ୍ଲାସ ହଜିଯାଇଥିଲା ତା' ଫେରି ଆସିଲା । ନୂଆରାଣୀ ଶ୍ୟାମଳା ଡରି ଡରି କ୍ଷମା ମାଗିଲା । ସପନପରୀ ମୁରୁକି ହସି ରାଜାଙ୍କୁ ଅନୁରୋଧ କଲା– ''ଶ୍ୟାମଳାକୁ ଦଣ୍ଡ ନଦେଇ କ୍ଷମା କରନ୍ତୁ ମହାରାଜ । ଯାହା ଘଟିଯାଇଛି ତାହା ସମସ୍ତଙ୍କ ଭଲ ପାଇଁ ହୋଇଛି । ସମ୍ଭବତଃ ଏହି କାରଣ ଯୋଗୁହିଁ ସପନପରୀ ତା' ପୃଥିବୀ ପୃଷ୍ଠକୁ ଫେରି ଆସି ପାରିଛି ।

❑❑

# ବିରାଡ଼ି ବୈଷ୍ଣବ



ଗୋଟାଏ ଗାଁରେ ବ୍ରାହ୍ମଣଟିଏ ରହୁଥିଲା । ତା'ର ପୁଅପାତି କିଛି ନଥିଲା । ଦିନକର ସେ ବୁଢ଼ା ବ୍ରାହ୍ମଣ ବୁଢ଼ୀକୁ ସାଥିରେ ଧରି ଜଙ୍ଗଲକୁ ବାହାରିଲା । ସେଠାରେ ତପଜପ-ପୂଜାପାଠ କରିବ, ଭଗବାନଙ୍କୁ ଧ୍ୟାନ-ଧାରଣା କରି ଜୀବନ ବିତାଇବ ।

ଦୁହେଁ ଜଙ୍ଗଲରେ କୁଡ଼ିଆଟିଏ କରି ରହିଲେ । ଥରେ ବିଲେଇଛୁଆଟିଏକୁ କୁଆମାନେ ଖୁମ୍ପି ଖଣ୍ଡିଆଖାବରା କରି ପକାଉଥା'ନ୍ତି । ବିଲେଇ ଛୁଆଟି ବଡ଼ ଡହଳବିକଳରେ ଚିତ୍କାର କରୁଥିବା ଶୁଣି ବୁଢ଼ା ବ୍ରାହ୍ମଣ ସେଠାରେ ପହଁଚି ବିଲେଇ ଛୁଆଟିକୁ ଘରକୁ ଆଣିଲା । ଦୁହେଁ ମିଶି ବଡ଼ ଯତ୍ନ ସହକାରେ ତାକୁ ପାଳନ କଲେ । ବିଲେଇଛୁଆଟି ସେମାନଙ୍କୁ ଛାଡ଼ି କୁଆଡ଼େ ଯାଉ ନଥାଏ ।

ବୁଢ଼ୀ ଦିନକର କହିଲା– 'ଚାଲ, ଏ ଜଙ୍ଗଲରେ ଆଉ କାହିଁକି ରହିବା, ଏ ବିଲେଇ ଛୁଆଟିକୁ ସାଥିରେ ଧରି ଗାଁକୁ ଫେରିଯିବା ।'

ବୁଢ଼ୀ କଥାରେ ବୁଢ଼ା ରାଜି ହୋଇ ବିଲେଇଟିକୁ ସାଥିରେ ଧରି ଗାଁକୁ ଫେରିଲା । ବିଲେଇଟି ବଡ଼ ହେବାକୁ ଲାଗିଲା । ସେ ଯେତିକି ଯେତିକି ବଡ଼ ହେଉଥାଏ, ସେତିକି ସେତିକି ଦୁଷ୍ଟାମି କରିବାରେ ଲାଗିଲା । ବୁଢ଼ାର ସାହିପଡ଼ିଶାମାନେ ସବୁବେଳେ ବିଲେଇ ନାଁରେ ଆସି ଫେରାଦ୍ ହେବାକୁ ଲାଗିଲେ ।

ଦିନକର ବୁଢ଼ା ରାଗିଯାଇ ବିଲେଇକୁ ଦୁଇ ଚାରି ଚଟକଣି ପକାଇ ଗୋଡ଼ ହାତ ବାନ୍ଧି ଘରେ ପକାଇଦେଲା ।

ବିଲେଇ ମନେ ମନେ ବହୁତ ଦୁଃଖ କଲା । ଠିକ୍ କଲା, ଏଠି ରହି ବୁଢ଼ାବୁଢ଼ୀଙ୍କୁ କାହିଁକି ଦୁଃଖ ଦେବ । ଏଠାରୁ ଚାଲିଗଲେ ଭଲ । କଷ୍ଟେମଷ୍ଟେ ଦଉଡ଼ିଗୁଡ଼ିକୁ କଟାକଟି କରି ବିଲେଇଟି ଖସି ପଳାଇଯାଇ ଗୋଟାଏ ଦ୍ୱୀପରେ ପହଁଚିଲା ।

ସେ ଦ୍ୱୀପରେ ଅନେକ ମୂଷା ଥା'ନ୍ତି । ସେମାନେ ବିଲେଇକୁ ଦେଖି ଡରି ଲୁଚିଲେ । ବିଲେଇଟି ସେମାନଙ୍କୁ ଡାକି ବୁଝାସୁଝା କଲା । ସେ ସନ୍ୟାସୀ ହୋଇଯାଇଛି, ସେ କାହାରି କିଛି ଅନିଷ୍ଟ କରିବ ନାହିଁ ବୋଲି କହିଲା । ମୂଷାମାନେ ବିଲେଇ ଉପରେ ଭରସା କରି ସେମାନଙ୍କ ଛୁଆମାନଙ୍କୁ ତା' ପାଖରେ ଛାଡ଼ି ଦେଇ ବାହାରକୁ ଖାଦ୍ୟ-ସଂଗ୍ରହ କରିବାକୁ ଯାଆନ୍ତି ।

ମୂଷାଛୁଆଙ୍କୁ ଦେଖି ବିଲେଇ ପାଟିରୁ ଲାଳ ବୋହିଲା, ହେଲେ କରିବ କ'ଣ ! ଆଉ ନିଜକୁ ସମ୍ଭାଳି ନପାରି ବିଲେଇଟି ଲୁଚେଇ ଲୁଚେଇ ମୂଷାଛୁଆମାନଙ୍କୁ ଖାଇବାକୁ ଲାଗିଲା ।

ମୂଷାମାନେ ବିଲେଇର ବଦମାସି ଜାଣିପାରିଲେ । ସେମାନେ ବା ବିଲେଇର କି କ୍ଷତି କରି ପାରିବେ ! ସେମାନେ ସବୁ ମିଶି ଏକ ଯୋଜନା କରି ରାତାରାତି ବିଲେଇ ଘରକୁ ଲାଗି ଏକ ବିରାଟ ଗାତଟିଏ ଖୋଳିଦେଲେ । ସକାଳୁ ସକାଳୁ ବିଲେଇଟି ଘରୁ ଯେମିତି ପଦାକୁ ଗୋଡ଼ କାଢ଼ିଛି ସେ ଗାତରେ ପଡ଼ିଯାଇ ପୋତି ହୋଇ ମରିଗଲା ।

❑❑

ଗୋଟିଏ ଘନ ଜଙ୍ଗଲ ଥିଲା । ସେଠି ଥିଲା ଗୋଟିଏ ବୁଢ଼ା ବରଗଛ । ସେହି ଗଛ ମୂଳରେ ଶହେ ଗାତ କରି 'ପଳିତ' ନାମରେ ଗୋଟିଏ ମୂଷା ରହୁଥିଲା ।

ସେହି ଗଛ ଡାଳରେ 'ଲୋମଶ' ନାମରେ ଗୋଟିଏ ବିରାଡ଼ି ରହୁଥିଲା– ଯେ କି ପ୍ରତିଦିନ ପକ୍ଷୀମାନଙ୍କୁ ଖାଇଯାଉଥିଲା । ଗଛ କୋରଡ଼ରେ 'ଚନ୍ଦ୍ରକ' ନାମରେ ଗୋଟିଏ ପେଚା ରହୁଥିଲା ।

କିଛି ଦିନ ପରେ ଗୋଟିଏ ଚାଣ୍ଡାଳ ସେହି ବଣରେ ଘର କରି ବସବାସ କଲା । ସେ ପ୍ରତିଦିନ ମୃଗମାନଙ୍କୁ ଧରିବାପାଇଁ ତା' କୁଡ଼ିଆ ଚାରିପାଖରେ ଜାଲ ବିଛାଉଥିଲା । ଦିନେ ସେହି ଗଛଡାଳରେ ରହୁଥିବା ବିରାଡ଼ିଟି ସେହି ଜାଲରେ ପଡ଼ିଗଲା । ଏହା ଦେଖି 'ପଳିତ' ନାମକ ମୂଷାଟି ତା' ନିଜର ଶତ୍ରୁ ଜାଲରେ ପଡ଼ିଥିବା ଦେଖି ବେପରୁଆ ଭାବେ ସେଠି ଭ୍ରମିବାକୁ ଲାଗିଲା ।

ଏତିକିବେଳେ ରକ୍ତଚକ୍ଷୁ ବିଶିଷ୍ଟ ଏକ ଚପଳ ନେଉଳ ମୂଷାର ଗନ୍ଧ ବାରି ତାକୁ ଖାଇବା ପାଇଁ ଗାତରୁ ମୁଣ୍ଡଟି ବାହାର କରି ଜିଭ ଲହଲହ କଲା । ଏଣେ ଆହୁରି 'ଚନ୍ଦ୍ରକ' ନାମକ ପେଚା ଡାଳ ଉପରେ ବସି ଘୁମେଇବାକୁ ଲାଗିଲା । ଏହି ଦୁଇଟି ଶତ୍ରୁଙ୍କୁ ଦେଖି ମୂଷାଟି ଘାବୁରେଇଗଲା । ବହୁତ ଚିନ୍ତା କରି ମୂଷାଟି ଏହି ସିଦ୍ଧାନ୍ତରେ ପହଞ୍ଚିଲା ଯେ– ତା'କୁ ଏତେବେଳେ ବିରାଡ଼ିଟି ଛଡ଼ା ଆଉ କେହି ରକ୍ଷା କରି ପାରିବେ ନାହିଁ । କାରଣ ବିରାଡ଼ିଟି ଶତ୍ରୁ ହେଲେ ମଧ୍ୟ ଏବେ ଅସୁବିଧାରେ ପଡ଼ିଛି । ତା'ର ଉପକାର କରି ମୂଷାଟି ଅନ୍ୟ ଶତ୍ରୁଟିକୁ ଠକି ଦେଇପାରେ । ମୂର୍ଖମିତ୍ର ଅପେକ୍ଷା ବୁଦ୍ଧିମାନ ଶତ୍ରୁର ଆଶ୍ରୟ ନେବା ଶ୍ରେୟସ୍କର ।

ମୂଷାଟି ବିରାଡ଼ି ପାଖକୁ ଯାଇ କହିଲା ''ମୁଁ ମୋ ନିଜର ଏବଂ ତୁମର ଭଲ ପାଇଁ ତୁମକୁ ଫାଶରୁ ମୁକୁଳାଇବାକୁ ଚାହେଁ । ନେଉଳ ଏବଂ ପେଚା ମୋତେ ମାରି ଖାଇଦେବାକୁ ବସିଛନ୍ତି । ତୁମେ ମୋତେ ଯେ କୌଣସି ଉପାୟରେ ରକ୍ଷା

କର । ଯଦି ତୁମେ ମୋତେ ନମାରିବା ପାଇଁ କଥା ଦେବ, ତା' ହେଲେ ମୁଁ ତୁମକୁ ଏହି ଜାଲରୁ କାଟିକରି ମୁକ୍ତ କରିବି ।''

ଚତୁର ବିରାଡ଼ିଟି ତା' ମନକଥା ଜାଣିପାରି ମୂଷା ସହିତ ସନ୍ଧି କରିବାପାଇଁ ଠିକ୍ ମନେକଲା । ସେ ମୂଷାକୁ କହିଲା, ''ତୁମେ ମୋର ଜାଲକୁ କାଟିଦିଅ । ମୁଁ ଜାଲରୁ ମୁକୁଳିଗଲେ ସୁଦ୍ଧା ତୁମର ଉପକାର କେବେ ହେଲେ ଭୂଲିପାରିବି ନାହିଁ ।''

ମୂଷା କହିଲା, ''ମୋ ପ୍ରାଣନେବାକୁ ପ୍ରସ୍ତୁତ ହୋଇ ରହିଥିବା ନେଉଳ ଏବଂ ପେଚା ଘୂରି ଘୂରି ମୋତେ ବାରମ୍ବାର ଦେଖୁଛନ୍ତି, ଏଣୁ ମୁଁ ତୁମର କୋଳରେ ଯାଇ ବସିବାକୁ ଭାବୁଛି । ତୁମେ କିନ୍ତୁ ମୋତେ ଖାଇବ ନାହିଁ । ସେମାନେ ଗଲାପରେ ମୁଁ ତୁମର ଜାଲ କାଟିଦେବି ।''

''ତୁମେ ଶୀଘ୍ର ମୋ କୋଳକୁ ଆସି ବସ । ଆଜିଠାରୁ ତୁମେ ମୋର ମିତ୍ର ହେଲ''— ବିରାଡ଼ି ପ୍ରସନ୍ନତା ସହକାରେ କହିଲା ।

ବିରାଡ଼ି ଏବଂ ମୂଷିକର ପ୍ରେମ ଏବଂ ସଦ୍‌ଭାବ ଦେଖି ପେଚା ଏବଂ ନେଉଳ ବଡ଼ ଆଶ୍ଚର୍ଯ୍ୟ ହେଲେ । ଏଥର ସେମାନେ ମୂଷାକୁ ଖାଇବାର ଆଶା ଛାଡ଼ିଦେଲେ ।

ସେ ଦୁହେଁ ବୁଦ୍ଧିମାନ୍ ଓ ବଳବାନ୍ ହେଲେ ମଧ୍ୟ ସେ ସମୟରେ ମୂଷା ଏବଂ ବିରାଡ଼ିର ନୀତି ଓ ଗତି-ପ୍ରକୃତି ଦେଖି ହାରିଗଲେ ଓ ସେଠାରୁ ପଳାଇଗଲେ ମଧ୍ୟ ।

× × ×

ସେମାନେ ପଳାଇଯିବା ପରେ 'ପଳିତ' ନାମକ ସେହି ମୂଷିକଟି ବିରାଡ଼ି କ୍ରୋଡ଼ରୁ ବାହାରି ଆସ୍ତେ ଆସ୍ତେ ଜାଲ କାଟିବାକୁ ଆରମ୍ଭ କଲା । ଏହା ଦେଖି ବିରାଡ଼ି କହିଲା ''ଟିକେ ଶୀଘ୍ର ଜାଲକୁ କାଟିଦିଅ । ଶିକାରୀ ଆସୁଥିବ କାଳେ ।''

ବୁଦ୍ଧିମାନ ମୂଷିକଟି କହିଲା– ''ଆମ୍ଭେ ଦୁହେଁ ନିଜ ନିଜର ସ୍ୱାର୍ଥ ପାଇଁ ପରସ୍ପରକୁ ବିଶ୍ୱାସ କରୁଛେ । ଶିକାରୀ ବା ଜମିମାଲିକ ଆସିବାର ଦେଖିଲେ ମୁଁ ଶୀଘ୍ର ଜାଲକାଟି ତୁମ୍ଭକୁ ମୁକ୍ତ କରିଦେବି ଏବଂ ମୁଁ ନିଜେ ମଧ୍ୟ ପଳାଇଯାଇ ଗାତରେ ଲୁଚି ଯିବି । ଉପଯୁକ୍ତ ସମୟ ନ ଆସିଥିବାରୁ ମୁଁ ତୁମକୁ ମୁକ୍ତ କରିଦେଲେ ମୋ ଉପରେ ବିପଦ ଆସିପାରେ ।'' ବିରାଡ଼ିକୁ ନିରୁତ୍ତର ରହିବାର ଦେଖି ମୂଷିକଟି ଆହୁରି କହିଲା, ''ତୁମରି ଗୋଟିଏ ଫାଶ ଛଡ଼ା ମୁଁ ଆଉ ସବୁ ଫାଶ ଦଉଡ଼ିକୁ କାଟିସାରିଲିଣି । ଯେତେବେଳେ ମୁଁ ଦେଖିବି ଜମିମାଲିକ ବା ଶିକାରୀ ଆସୁଛି ସେତେବେଳେ ତୁରନ୍ତ ମୁଁ ତୁମର ଫାଶ କାଟିଦେବି । ତୁମେ କିଛି ଭାବନା, ନିଶ୍ଚିନ୍ତ ରୁହ ।''

× × ×

ଭୋର ହେବାରୁ ଶିକାରୀ ବା ଜମିମାଲିକ ଆସିବାର ଦେଖାଗଲା । ସେତିକିବେଳେ ମୂଷିକ ସହସା ଶେଷ ଫାଶ ଦଉଡ଼ିକୁ କାଟିଦେଲା । ଜାଲରୁ ମୁକୁଳି ବିରାଡ଼ିଟି ଗଛ ଡାଳକୁ ଚଢ଼ିଗଲା ଏବଂ ମୂଷିକଟି ଗାତଭିତରକୁ ପଶିଗଲା ।

ଏବେ ଗଛ ଡାଳରେ ବସିଥିବା ବିରାଡ଼ି ମୂଷିକଟିକୁ ଡାକି କହିଲା, ''ତୁମେ ମୋର ମିତ୍ର ଅଟ । ମିତ୍ରଭାବ ନେଇ ମୋ ପାଖକୁ ଆସ ।''

ବିରାଡ଼ିର ଏହି ଚହଟଚିକ୍କଣ କଥାଶୁଣି ମୂଷିକଟି କହିଲା, ''ମିତ୍ର ! ଏ ସାରା ଜଗତରେ କେତେବେଳେ ଯେ କିଏ କାହାର ଶତ୍ରୁ ବା ମିତ୍ର ହେବ କହିହେବ ନାହିଁ । ମାତ୍ର ତୁମେ ଏବେ ଜାଲରୁ ମୁକୁଳି ଯାଇଛ । କିନ୍ତୁ ତୁମର ସ୍ୱଭାବ ଅତି ଚପଳ ଓ ଚଞ୍ଚଳ । ଏଣୁ ତୁମର ବୁଦ୍ଧି ସ୍ଥିର ନୁହେଁ । ପ୍ରକୃତରେ ତୁମେ ମୋତେ ଖାଇବାକୁ ଚାହୁଁଛ । ଏଣୁ ତୁମେ ମୋ ସହିତ ମଧୁର ବାର୍ତ୍ତାଳାପ କରୁଛ । ମୁଁ କିନ୍ତୁ ସେଥିରେ ଭୁଲିଯାଇ ତୁମ ନିକଟକୁ ଯିବି ନାହିଁ । କାରଣ ମୁଁ ମଧ୍ୟ ମୋ ନିଜ ଜୀବନ ରକ୍ଷା ପାଇଁ ଚେଷ୍ଟା କରିବି ।''

ମୂଷିକଟିର ଏହି କଥା ଶୁଣି ବିରାଡ଼ିଟି ବଡ଼ ଆଶ୍ଚର୍ଯ୍ୟ ହେଲା । ସେ କହିବାକୁ ଲାଗିଲା, ''ମିତ୍ର ! ମୁଁ ଶପଥ କରି କହୁଛି ଯେ ତୁମର କିଛି ଅନିଷ୍ଟ କରିବି ନାହିଁ। ମିତ୍ର-ଦ୍ରୋହକୁ ମୁଁ ଘୃଣାରେ ଏବଂ ଏହା ଏକ ଅପରାଧ ବୋଲି ମୁଁ ଅବଗତ ଅଟେ । ମୁଁ ତୁମର ଭକ୍ତ ଅଟେ । ତୁମେ ଧର୍ମାତ୍ମା, ପୁଣ୍ୟାତ୍ମା ଏବଂ ଗୁଣଜ୍ଞ ଅଟ ବୋଲି ମୁଁ ମାନୁଛି ।''

ବିରାଡ଼ିଟିର ଏପରି ସ୍ତୁତି ଶୁଣି ମୂଷକଟି କିଛି ସମୟ ଯାଏ ଗମ୍ଭୀର ହୋଇ ରହି ପୁଣି କହିଲା, ''ଲୋମଶ ! ତୁମର ସମସ୍ତ କଥା ମୁଁ ମନଧ୍ୟାନ ସହକାରେ ଶୁଣିଛି । କିନ୍ତୁ ବିଦ୍ୱାନ୍‌ମାନେ କହିଛନ୍ତି ଯେ ଅତି ପ୍ରିୟ ବ୍ୟକ୍ତିଠାରେ ଅଧିକ ବିଶ୍ୱାସ କରିବ ନାହିଁ। ଏଣୁ ତୁମେ ମୋତେ ସ୍ତୁତି କର ବା ଲାଞ୍ଚ ଦିଅ ମୁଁ କିନ୍ତୁ ତୁମ ଉପରେ ବିଶ୍ୱାସ ରଖିବି ନାହିଁ । ଶୁକ୍ରାଚାର୍ଯ୍ୟ ମଧ କହିଛନ୍ତି ଯେ ବଳବାନ୍ ଶତ୍ରୁ ସହିତ ସନ୍ଧି କରି ଖୁବ୍ ସତର୍କତାର ସହିତ ରହିବ ଏବଂ କାର୍ଯ୍ୟ ସାଧନ ହେଲାପରେ ତାଙ୍କୁ କଦାପି ବିଶ୍ୱାସ କରିବ ନାହିଁ। ଅନ୍ୟମାନଙ୍କୁ ଅତିବେଶି ବିଶ୍ୱାସ ନ କରିବାକୁ ନୀତିଶାସ୍ତ୍ରଗୁଡ଼ିକ ମତ ଦେଇଛନ୍ତି । ଯିଏ କାହାରି ଉପରେ ଆବଶ୍ୟକତା ଛଡ଼ା ଅଧିକ ବିଶ୍ୱାସ କରେ ନାହିଁ, ସେ ନିର୍ବଳ ହେଲେ ମଧ୍ୟ ଶତ୍ରୁମାନଙ୍କ କବଳରେ ପଡ଼େ ନାହିଁ । ହେ ବନ୍ଧୁ ! ତୁମେ ମୋର ମିତ୍ର ନୁହଁ ଶତ୍ରୁ । ମୋତେ ତୁମଠାରୁ ରକ୍ଷା କରିବାକୁ ହେବ । ମୁଁ ତୁମକୁ ଏତିକି ପରାମର୍ଶ ଦେଇପାରେ ଯେ ଜାଲ ବିଛେଇଥିବା ଶିକାରୀ ବା ଜମିମାଲିକ ନିକଟରୁ ତୁମେ ନିଜକୁ ରକ୍ଷା କରିବା ପାଇଁ ନିଜେ ଚେଷ୍ଟିତ ହେବା ଉଚିତ ।''

ମୂଷିକଟି ନିକଟରୁ ଏକଥା ଶୁଣି ଶିକାରୀର ଭୟରେ ବିରାଡ଼ିଟି ଗଛଛାଡ଼ି ପଳାଇଗଲା । ଏଥର ମୂଷିକଟିକୁ କୌଣସି ଗୋଟିଏ ହେଲେ ଶତ୍ରୁର ଭୟ ମଧ ରହିଲା ନାହିଁ। ଏହିପରି ନିର୍ବଳ ହେଲେ ମଧ ବୁଦ୍ଧିମାନ ମୂଷିକଟି ନିଜ ବୁଦ୍ଧିବଳରେ ଅନେକ ବଳବାନ୍ ଶତ୍ରୁମାନଙ୍କଠାରୁ ନିଜକୁ ରକ୍ଷା କରିପାରିଲା ।

□□